# ପଶୁ ଦରବାର

ଶ୍ରୀ ଉଦମ୍ନ ନାଥ ମିଶ୍ର



ଶିଶୁ ନାଟକ

# ପଶୁ ଦରବାର



ଉପେନ୍ଦ୍ରନାଥ ମିଶ୍ର

ପ୍ରକାଶକ :
ଶ୍ରୀ ଉମେଶପ୍ରସାଦ ସାହୁ
ସନ୍ତୋଷ ପବ୍ଲିକେସନ୍ସ୍
କଟକ-୧, ବ୍ରହ୍ମପୁର-୩

ପ୍ରଚ୍ଛଦପଟ୍ଟ :
ଶ୍ରୀ ଅସୀତ ମୁଖର୍ଜୀ
ଶିଳ୍ପରୂପମ୍
ନୟାସଡ଼କ, କଟକ-୨

ଦ୍ୱିତୀୟ ମୁଦ୍ରଣ :
ଜୁନ୍-୧୯୭୭

ମୁଦ୍ରାକର :
ଶ୍ରୀ ଗୋପୀନାଥ ସାହୁ
ରାଷ୍ଟ୍ରଭାଷା ସମବାୟ ପ୍ରେସ୍
ରାଷ୍ଟ୍ରଭାଷା ରୋଡ୍, କଟକ-୧

ମୂଲ୍ୟ :
**ଦୁଇ ଟଙ୍କା ପଚିଶ ପଇସା ମାତ୍ର**



********************************

ନାଟକବର୍ଣ୍ଣିତ ବଉଳ, ଜୀବଜନ୍ତୁଙ୍କ ଭୂମିକାର ଅଭିନୟ ମୁଖା ଓ ପୋଷାକ ପିନ୍ଧି କରିବାକୁ ହେବ ।

********************************

# ପ୍ରଥମ ଦୃଶ୍ୟ

[ ଜଙ୍ଗଲର ଗୋଟିଏ ଅଂଶ । ପଶୁମାନଙ୍କ ଗର୍ଜନ ଓ ପକ୍ଷୀମାନଙ୍କର କଳରବ ଶୁଣାଯାଉଥାଏ । ପ୍ରବେଶ କଲା ସିଂହ । ସଙ୍ଗରେ ତା'ର ବିଲୁଆ । ]

ସିଂହ—(ଚାରିଆଡ଼କୁ ଚାହିଁ ଓ ଗର୍ଜନ କରି ) କି ଆଶ୍ଚର୍ଯ୍ୟ !

କେହି ତ ଆସି ନାହାନ୍ତି ଏଠି !

କଥା ହୋଇଥିଲା—

ସବୁ ପଶୁ ହୋଇ ଠୁଳ

ବରିବେ ସାଦରେ ମୋତେ ବନରାଜରୂପେ,

ପିନ୍ଧାଇବେ ରାଜାର ମୁକୁଟ,

ସସମ୍ମାନ ଧରି ଛତ୍ରୀ, ଚାମର, ଆଲଟ

ପଶୁଗଣ କରିବେ ଆମର ସେବା ବହୁବିଧ;

କିନ୍ତୁ କି ହେଲା !

କାହିଁ, କାହାରି ତ ନାହିଁ ଦେଖା !

ବିଲୁଆ—ହୁକେ-ହୋ !

ନିଶ୍ଚୟ ଏ ଦୁଷ୍ଟମତି ହାତୀର ଷଡ଼ଯନ୍ତ୍ର !

ଯେତେ ସବୁ ଜଙ୍ଗଲର ତୃଣଭୋଜୀ ପଶୁ

ନାହିଁ ବିଶ୍ୱାସ ତାଙ୍କର ଆମ ଏ କାର୍ଯ୍ୟରେ ।

ମୋଟା-ସୋଠା ହାତୀ ତାଙ୍କ ସାଜିଅଛି ନେତା !

ସର୍ବେ ମିଳି କରନ୍ତି ପ୍ରଚାର···

ସିଂହ—କି ପ୍ରଚାର ବନ୍ଧୁ !

ବିଲୁଆ—ବିଶ୍ୱାସ-ପାତ୍ର ନୁହନ୍ତି ସିଂହ ଓ ବିଲୁଆ !

ସିଂହ—ଅବିଶ୍ୱାସ କରନ୍ତି ଆମକୁ ! ସର୍ବନାଶ !
ମହା ଅସୁବିଧା ତେବେ ହେବ ତ ନିଶ୍ଚୟ !
ପସର ଫାଟିବ କିବା ଆମ ସବୁ ଚେଷ୍ଟା,
ଯେତେ ସବୁ ଆୟୋଜନ ହେବ କି ବିଫଳ !
ନା, ଶୃଗାଳ !
ମହା ଧୂର୍ତ୍ତ ବୋଲି ତୁମେ ବିଖ୍ୟାତ ଜଗତେ ।
ନାନା ଉପାୟେ ଭୁଲାଇ ବନଜନ୍ତୁଗଣେ
କରିଦିଅ ରାଜା ମୋତେ ଏ ଜଙ୍ଗଲମଧ୍ୟେ ।

ବିଲୁଆ—ମାଏ, ତହିଁ ମୋର ହେବ କିବା ଲାଭ ?

ସିଂହ—ହେଲେ ରାଜା ମୁହିଁ—
ବରିବି ତୁମକୁ ନିଶ୍ଚେ ମୋର ମନ୍ତ୍ରିରୂପେ ।

ବିଲୁଆ—ତହିଁରେ କି ପୂରିବ ମୋ ପେଟ ?

ସିଂହ—ପେଟକଥା କିଆଁ ଉଠାଅ ବିଲୁଆ ?
ଏ ତ ରାଜକର୍ମ ।
କରିବାକୁ ଦେଶର ଶାସନ,
ବୁଝିବାକୁ ପ୍ରଜାଙ୍କର ସୁଖ-ଦୁଃଖ-କଥା
ହେବି ରାଜା ମୁହିଁ,
ଆଉ···ମନ୍ତ୍ରିପଦ ତୁମେ କରି ଅଲଙ୍କୃତ
ହେବ ମୋର ସହାୟକ ସଦା ।

ବିଲୁଆ—କିନ୍ତୁ···
କିବା ରାଜକାର୍ଯ୍ୟ, ଧର୍ମକାର୍ଯ୍ୟ କିବା
କାହିଁ ବାଦ୍ ଯାଏ ନାହିଁ ପେଟର ବ୍ୟବସ୍ଥା ।

ସିଂହ—(ହସି) ଅତି ବୁଦ୍ଧିମାନ୍ ସୁଚତୁର ତୁମେ ମହାମନ୍ତ୍ରି !
ଅଦ୍ଭୁତ ଅପୂର୍ବ ତୁମ ବୁଝିବାର ଶକ୍ତି !
କିନ୍ତୁ ବନ୍ଧୁ !
ରାଜନୀତି ଏକ ଅତି ବିଚିତ୍ର ବ୍ୟବସ୍ଥା,
ସତ କଥା ତହିଁ କେହି କରେ ନି ପ୍ରକାଶ ।
ତେଣୁ ମନକଥା ରଖି ମନେ
ଚଲ ବନ୍ଧୁ ଅତି ସାବଧାନେ ।
ଉଦ୍ଦେଶ୍ୟ ସାଧନ କର ନାନା କଉଶଳେ
ବୁଝାଇ ପଶୁମାନଙ୍କୁ...
ହେଇ ତ ଆସୁଛନ୍ତି ବାଘ ।

ବାଘ—(ପ୍ରବେଶପରେ ଶବ୍ଦ କରି) କିପାଁ ମୋତେ ଡକାଇଲ ସିଂହ !
ଡର ଲାଗେ...



ସିଂହ—ଡରିବାର ନାହିଁ କିଛି ବନ୍ଧୁ !
ହିଂସା କର୍ମ ଏବେ ନ କରୁଛୁ ଆମେ ।
ଜୀବ-ବଧ-ବୃତ୍ତି ଛାଡ଼ି ନେଇଅଛୁ ଦୀକ୍ଷା
ସୁଖେ ପାଳିବାକୁ ବନ-ପଶୁକୁଳେ
ଜଙ୍ଗଲ-ସମ୍ରାଟ୍ ରୂପେ ।
ବିଲୁଆ ହୋଇବେ ମନ୍ତ୍ରୀ, ତୁମେ ଦେହରକ୍ଷୀ ।

ବଲୁଆ — ସୁନ୍ଦର ପ୍ରସ୍ତାବ ଏହା ବାଘ ମହାଶୟ !
ସାହାଯ୍ୟ କରିବ ତୁମେ ସିଂହ-ସମ୍ରାଟଙ୍କୁ ।

ବାଘ— ସାହାଯ୍ୟ ମୁଁ କରିବି କାହାକୁ !
ହେଲଣି ମୁଁ ବୁଢ଼ା;
ତେଣୁ ନିଜ-ରକ୍ଷା ଅତି ଅସମ୍ଭବ ।
ଠେକୁଆ, ହରିଣ ଆଦି ବନ-ପଶୁକୁଲେ
ଆଉ ନ ଦିଅନ୍ତି ଧରା ।
ଖାଇବାକୁ ମୋତେ ଏବେ ନ ମିଳୁଛି କିଛି
ପେଟର କଷଣ ମୋର
ହେଲାଣି ଅସହ୍ୟ ଖାଦ୍ୟର ଅଭାବେ ।

ସିଂହ—ବୃଥା କିପାଁ କର ଦୁଃଖ ବନ୍ଧୁବର ବାଘ !
ବେନି ଜନେ ପଡ଼ିଅଛୁ ଏବେ ଏକ ଦଶା ।
ଯେବେ ଚଳିବ ଏଠାରେ ଆମର ଶାସନ,
ପେଟ-ଦୁଃଖ ତୁମ ନ ରହିବ ଆଉ ।
ତେଣୁ ରହ ପାଖେ ପାଖେ
ଆମ ଦେହରକ୍ଷୀରୂପେ···

ବଲୁଆ —ନିଶ୍ଚିନ୍ତ ରହନ୍ତୁ ମହାରାଜ !
ବାଘବାବୁ କରିବେ ସାହାଯ୍ୟ
ଆମକୁ ନିଶ୍ଚୟ ଏ ମହତ୍ କାର୍ଯ୍ୟେ ।

ସିଂହ—ସାଧୁ ବଲୁଆ ମନ୍ତ୍ରି ! ସାଧୁ ବାଘ ଦେହରକ୍ଷି ;
ସର୍ବେ ମିଳି କର ବନ୍ଦୋବସ୍ତ ଅଭିଷେକପାଇଁ ।
ଚାରିଆଡ଼େ ବରଗିଣ ଚର
କରାଅ ପ୍ରଚାର ଏହି ଶୁଭ ସଂବାଦର ।

କିନ୍ତୁ ମନେ ରଖ ଭୁହେଁ—
ସାବଧାନେ ସବୁ କାମ କରିବ ଅବଶ୍ୟ ।
ଗୋଟି ଗୋଟି କରି
ସବୁ ପଶୁଙ୍କୁ ବୁଝାଇ ଆମ ମହତ୍ ଉଦ୍ଦେଶ୍ୟ
କରି କରଗତ ।
ଯେତେ ବାଧା ଦେବେ ହାତୀ, ଘୋଡ଼ା, ହରିଣ ପ୍ରଭୃତି
ନ କରି ଖାତିର ତାହା
ନିଜ ନିଜ କର୍ମପଥେ ହୁଅ ଅଗ୍ରସର ।

ବାଘ—କିନ୍ତୁ ··
ଭକ୍ଷ୍ୟ-ଭକ୍ଷକର ପ୍ରୀତି କେବେ କି ସମ୍ଭବ !
ବିଶ୍ୱାସ କରିବେ କେହି କି ଆମ୍ଭମାନଙ୍କୁ ?

ବିଲୁଆ —ଅବିଶ୍ୱାସ କରିବେ କାହିଁକି ?
ସିଂହ ପରି ଛାଡ଼ି ହିଂସାବୃତ୍ତି
ଧରିଛନ୍ତି ଧର୍ମ-ଅବତାର !

ସିଂହ—ଧର୍ମ ଅବତାର ହୋଇ ଆମେ ଶାସିବୁ ଜଙ୍ଗଲ ।
ସର୍ବେ ଦେଖିଛନ୍ତି ଆମ ହିଂସ୍ରବୃତ୍ତି ଏଥି;
କିନ୍ତୁ ଆମ ଧୀର ଶାନ୍ତ ରୂପ ଦେଖିବେ ଏଣିକି ।
ଆବଶ୍ୟକ ହେଲେ ପିନ୍ଧି କଣ୍ଠି କଉପୁନି,
ଧରି ରୁଦ୍ରାକ୍ଷର ମାଳି,
ମାରି ଚିତା କପୋଳଦେଶରେ···

ବାଘ—ସେ ଚାଲିକି ଜାଣନ୍ତି ତ ବନ୍ୟଜନ୍ତୁଗଣେ ।
ଥରେ ସାଜିଥିଲି ମୁହିଁ ସେ ସନ୍ନ୍ୟାସ-ରୂପ
କଉଶଳେ ଖାଇବାକୁ ନରୀହ ପାନ୍ଥକୁ ।

ଆଉ, ଯଦିନେ ଧରିଥିଲି ସେହି ଭେକ ବଣର ବରାଡ଼
ଗୃହଲିକରେ ଖାଇବାକୁ ଚଢ଼େଇଛନ୍ତୁ ଆଙ୍କୁ।

ସିଂହ—ବାଘବାବୁ !
ସେ କଥିର ନ କର ପ୍ରକାଶ
ଆମ ସଙ୍ଗେ ନୀରବରେ ରହି କର କାମ—
ସୁରୁଖୁରୁରେ ହେବେ ଏଥି ଗୃହବ ଶାସନ।

ବାଲୁଆ—ପଶୁରାଜଙ୍କ ଉପରେ କରନ୍ତୁ ବିଶ୍ୱାସ,
ସେ ଆମକୁ ଦେଖାଇବେ ସତ୍‌ପଥ ନିଶ୍ଚୟ।
ବୁଝିବେ ଆମର ସବୁ ସୁଖ-ଦୁଃଖ-କଥା।

ସିଂହ- ନିଶ୍ଚୟ !
ଧର୍ମକୁ ସାକ୍ଷୀ ରଖି କରୁଛି ପ୍ରତିଜ୍ଞା—
ହେଲେ ମୁଁ ଜଙ୍ଗଲରାଜା,
ବୁଝିବି ନିଶ୍ଚୟ ସମସ୍ତଙ୍କ ଦୁଃଖ,
ଆଉ ତୁମ ପେଟ-ପାଟିର ଓଜର।

ବାଲୁଆ—ଧନ୍ୟ, ଧନ୍ୟ ସିଂହରାଜ !

ବାଘ—ଜୟ, ସିଂହରାଜଙ୍କର ଜୟ !

ବାଲୁଆ—ଜୟ, ବାଘ ଦେହରକ୍ଷୀଙ୍କର ଜୟ !



## ଦ୍ୱିତୀୟ ଦୃଶ୍ୟ

[ ଜଙ୍ଗଲର ସେହି ସ୍ଥାନ । ପ୍ରବେଶ କଲେ ହାତୀ, ହରିଣ, ଠେକୁଆ ]

ହାତୀ—ଏ ତ ବଡ଼ କଠିନ ସମସ୍ୟା !
ସତେ କ'ଣ ସିଂହ ପାଲଟିଛି ସାଧୁବାବା ଏବେ ?

ହରିଣ—କିବା ବିଶ୍ୱାସ ତାହାକୁ !
ମହା ହିଂସ୍ର ସେହି;
ତା'ର ଆଉ ତା' ଭାଇବନ୍ଧୁଙ୍କ ଉପଦ୍ରବେ
ଦିନେ ହେଲେ ନାହିଁ ଶାନ୍ତି ଏ ବନଭୂଇଁରେ ।
ଆମ କୁଳ କରିଲେ ନିପାତ ।
ମାରି ଖାଇ ଧୀର ଶାନ୍ତ ପଶୁଦଳେ,
ନିତ ହା-ହାକାର ପକାଇଲେ ସାରା ବନମଧ୍ୟେ ।



ଠେକୁଆ— ନ ଆସେ ପରତେ ସିଂହ ମଧୁର ବଚନେ ।
ସେହି-ହିରାଗ ଦେଖାଇ
କହେ କଥା ଯେବେ ହସି ଖୋଲି ପାଟି,

ଦେଖି ସେ ମୁନିଆ ଦାନ୍ତ, ସେ ଭୀଷଣ ମୁହଁ
ଡରେ କୋଲ୍ହ ମାରିଯାଏ କଲିଜା ମୋହର ।

ହାତୀ—ତୁମେ ଖାଲି ଡରେ ଭୟେ କରିଲେ ଚିତ୍କାର
ଏ କଠିନ କାର୍ଯ୍ୟର କି ହେବ ସମାଧାନ ?
ସବୁ ହିଂସ୍ରପଶୁ ହୋଇଛନ୍ତି ଏକଜୁଟ ।
ବାରମ୍ବାର ଦିଅନ୍ତି ସଂବାଦ
ଦେବାପାଇଁ ଯୋଗଦାନ
ସିଂହ-ଅଭିଷେକ-ଦରବାରେ ।

ହରିଣ—ନ ଯିବା ସେ ସ୍ଥାନେ ଜାଣିଶୁଣି,
ନ ମାନିବା ଆମେ ରାଜାରୂପେ
ସିଂହକୁ କଦାପି ।

ଠେକୁଆ—ହେବାରୁ ସେ ବୃଦ୍ଧ, ଶକ୍ତିହୀନ,
ବଳାତ୍କାରେ ନ ପାରଇ ଧରି ପଶୁକୁଳ,
ତେଣୁ କରନ୍ତି ଏ କୂଟବୁଦ୍ଧି-କୌଶଳ ପ୍ରୟୋଗ ।

ହାତୀ— କିନ୍ତୁ ଜାଣିଶୁଣି
ଯଦି କରିବା ଉପେକ୍ଷା
ତାଙ୍କ ନିମନ୍ତ୍ରଣେ,
ତାଙ୍କ ସ୍ନେହ-ଶ୍ରଦ୍ଧାହିଁ ବ···

ହରିଣ ସିଂହର ସ୍ନେହ-ଶ୍ରଦ୍ଧା ଭୟାନକ ଅତି ।
ଦୁଷ୍ଟମତି ଖୋଜିଛି ଉପାୟ
ଖାଇବାକୁ ସୁଖେ ଆମକୁ କୌଶଳେ
ବିଶ୍ୱାସ ଜନ୍ମାଇ ମନରେ ଆମର
ଖାଲି କପଟ କଥାରେ ।

ଠେକୁଆ—ନା,

ବରଂ ସିଂହର ଶତ୍ରୁତା ଅଛି ଯେଉଁପରି,
ଆଉ ତାହା ଚିରନ୍ତନ ।
ଅତ୍ୟନ୍ତ ସତର୍କ ରହି,
ନାନା ଉପାୟରେ ନିଜର ଜୀବନ
ରକ୍ଷା କରିଥାଇଁ ଏ ବନଭିତରେ,
କିପାଁ ଜାଣିଶୁଣି
ସମର୍ପଦେବା ନିଜକୁ ତାହାର ନିକଟେ ?

ହାତୀ—କିନ୍ତୁ ଦେଖି ଆମ ଏହି କରିଛଡ଼ା ନୀତି
ଯଦି ସବୁ ହିଂସ୍ର ପଶୁ ମିଳି
ଆକ୍ରମଣ କରିବେ ଆମକୁ...

ହରିଣ—ଫାନ୍ଦି ନାନା କଉଶଳ
ପ୍ରାଣପଣେ ପ୍ରତିରୋଧ କରିବା ତାହାର ।
କିପାଁ ପଳାଇବା ଦୂରେ ?...

ଠେକୁଆ—ଯୁଦ୍ଧ କରିବା ସକଳେ ହୋଇ ଏକମେଳ ।

ହାତୀ—କିବା ପ୍ରତିରୋଧ, କିବା ଯୁଦ୍ଧ କରି ବା ପାରିବ
ଯେତେ ସବୁ ଅଛ ବନେ ତୃଣଭୋଜୀ ପଶୁ ?
ନିତାନ୍ତ ଦୁର୍ବଳ, ନିତାନ୍ତ ନିରୀହ ତୁମେ ।
ସର୍ବେ ମିଳି ଯଦି କର ଚେଷ୍ଟା,
ପାରିବ କି ରୋକି ସିଂହ-ବାଘ-ଆକ୍ରମଣ ?

ହରିଣ—କହ ତେବେ ହସ୍ତୀରାଜ !
କେଉଁ ଉପାୟରେ ରକ୍ଷା କରିବା ନିଜକୁ ?

ଠେକୁଆ—ଯେପରି କି ପ୍ରାଣହାନି ନ ହେବ ଆମର,
ସୁଖ-ଶାନ୍ତିରେ ରହିବା ଆମେ ବନରାଜ୍ୟେ ।

ହାତୀ—ସେ ତ ଏକ ଗୁରୁତର ଜଟିଳ ସମସ୍ୟା !
ତେବେ ନ ହେବ ଉଚିତ ବର୍ଜନ କରିବା
ସିଂହ-ଅଭିଷେକସଭା ପ୍ରଥମରୁ ଆମେ,
କାରଣ, ଏ ଅସହଯୋଗକୁ କରି ଆଳ
ଖଳ ହିଂସ୍ର ପଶୁକୁଳ
ଶୀଘ୍ର ଆରମ୍ଭିବେ ନାନା ଗଣ୍ଡଗୋଳ, ଅତ୍ୟାଚାର ।

ହରିଣ—ତେବେ କି କରିବା କହନ୍ତୁ ବୁଝାଇ ?

ଠେକୁଆ—ତୁମେ ତ ଆମର ରାଜା ତୃଣଭୋଜୀଙ୍କର ।

ହାତୀ—ଦିଅ ଯୋଗ ସର୍ବେ ସିଂହ-ଅଭିଷେକ କାର୍ଯ୍ୟେ,
ବୁଝିବା କିବା ଉଦ୍ଦେଶ୍ୟ ରହିଛି ଏଥିରେ ।
ଆମେ ତ ନୋହୁ ମନୁଷ୍ୟ ସୁସଭ୍ୟ ପଣ୍ଡିତ ।
ନାହିଁ ଏଥି କିଛି ମାତ୍ର ଆଇନ୍ ବ୍ୟବସ୍ଥା,
କୋର୍ଟ, କଚେରି, ହାକିମ, ଅମଲା, ଦପ୍ତର,
ତେଣୁ କିପାଇଁ ଏ ଅଭିଷେକ ପ୍ରହସନ ?
ହେଲେ, ଥିବ ସର୍ବେ ସଦା ଅତି ସାବଧାନ
କଡକି ନ ଯିବ କେବେ ସିଂହ ବାଲୁଆଙ୍କ ।

ଠେକୁଆ—ଅବଶ୍ୟ ମାନିବୁ ଆମେ ତୁମ ଉପଦେଶ,
କିନ୍ତୁ ସିଂହ, ବାଘ ଆଦି
ଯଦି ବଳାତ୍କାରେ ଧରନ୍ତି ଆମକୁ···

ହରିଣ—ଖାଇବାକୁ କଉଶଳେ···

ହାତୀ— ନିଜ ବଳେ ପ୍ରତିରୋଧ କରିବା ତାହାର ।

ଠେକୁଆ—ଧନ୍ୟ ଗଜରାଜ !

ପ୍ରତିରୋଧ କରିବା ତାହାର ନିଜବଳେ
ଆଉ ବୁଦ୍ଧି କଉଶଳେ ।



ହରିଣ—ଧନ୍ୟ ଗଜରାଜ !

ହରିଣ ଓ ଠେକୁଆ—ଜୟ, ହାତୀ ମହାରାଜଙ୍କର ଜୟ !



## ତୃତୀୟ ଦୃଶ୍ୟ

[ ଜଙ୍ଗଲ—ଦୂରରୁ ପଶୁମାନଙ୍କ ଗର୍ଜନ ଶୁଣାଯାଉଥିଲା । ପରେ ପରେ ଦ୍ରୁତପଦରେ ପ୍ରବେଶ କଲା ସିଂହ; ସଙ୍ଗରେ ଦେହରକ୍ଷୀ ବାଘ । ]

ସିଂହ—ସିଂହ ଆମେ ପଶୁମଧ୍ୟେ ସାର,
ଆଉ ଯେତେ ଜନ୍ତୁଜାନ୍ତୁ ଅଛନ୍ତି ଜଙ୍ଗଲେ
କେହି ସମତୁଲ କେବେ ନ ହେବେ ଆମର ।
ତେଣୁ ବାଘ, ଭାଲୁ, ଗଧିଆ, ବିଲୁଆ
ସର୍ବେ ମିଳି ବରିଲେ ଆମକୁ ରାଜାରୂପେ ।
ହୋଇଥିଲା ସ୍ଥିର, ହେବ ଆଜି ଅଭିଷେକ;
କିନ୍ତୁ — କିନ୍ତୁ କାହାନ୍ତି ମୋ ମନ୍ତ୍ରୀ ସୁଚତୁର ?
କାହିଁ ହନୁମାନ୍ ମୋର ବୁଦ୍ଧିମାନ୍ ଚର ?
କାହାନ୍ତି ମୋ ଘୋଡ଼ାଦଳ, କାହାନ୍ତି ମୋ ଗଧ ?
ଦେହରକ୍ଷି ! ଦେହରକ୍ଷି !

( ବାଘ ଆଗକୁ ଆସି ପ୍ରଣାମ କଲା । )

ବାଘ—ମହିମା !

ସିଂହ—ଡକାଅ ଖବର ଦେଇ ମନ୍ତ୍ରୀ ଶୃଗାଳଙ୍କୁ ।

ବାଘ—ଯେ ହୁକୁମ ମହିମା ! ( ବାଘ ଗୁଲିଗଲା )

ସିଂହ—ଏତେ ପୁଣି ଗର୍ବ !
ମୋର ଅଭିଷେକ-କାମେ ତ୍ରୁଟି, ଅବହେଳା !
ଦେବ ତା'ରେ ମୁଁ ଦଣ୍ଡ ଉଚିତ ।

( ବିଲୁଆକୁ ସଙ୍ଗରେ ଧରି ବାଘ ପହଞ୍ଚିଲା । )

ସିଂହ—ମହାମନ୍ତ୍ରି !

ବିଲୁଆ—ଆଦେଶ କରନ୍ତୁ ମହିମା !

ସିଂହ—ବିଲୁଆ ବୁଦ୍ଧିଆ ବୋଲି ଜାଣନ୍ତି ଜଗତେ,
ତେଣୁ ଆମେ ବରିଲୁ ତୁମକୁ ମନ୍ତ୍ରୀରୂପେ;



କିନ୍ତୁ ଆଜି ମୋର ଅଭିଷେକ-ଦିନେ
କାହିଁ ତୁମେ କି କାରଣେ ରହିଛ ଗୋପନେ ?
କାହିଁ ଦେଖିଲ କି ମଡ଼ା ? କିବା ପୋକା ହାଡ଼ ?

ବିଲୁଆ--ମଡ଼ା, ହାଡ଼ ଆଉ ନ ମିଳୁଛି ମୋତେ ଏଥି
ଯେଉଁ ଦିନୁ ତୁମେ ବାଘ-ସିଂହ ହେଲ ବୁଢ଼ା···

ସିଂହ—ରଖ ସେହି ବାଜେ କଥା, ନାହିଁ ତା'ର ପ୍ରୟୋଜନ ।
କି କାରଣେ ବେଖାତିର କରିଲ ଆମକୁ ?
ଜାଣିଛ ତ ?
ଯଦି ଆମେ ହେବୁ କ୍ରୋଧାନ୍ୱିତ···

ବିଲୁଆ—ଛାରଖାର କରିଦେବେ ଏ ଜଙ୍ଗଲ-ରାଜ୍ୟ;
କିନ୍ତୁ ମୋର ଏଥି କିବା ଦୋଷ ?
ଶୁଣ ସିଂହ !
ସିଂହ—ସିଂହ !
ସମ୍ରାଟ୍ ବୋଲି ଟିକିଏ ଡାକିବ ଆମକୁ ।

ବାଘ—ନୋହିଲେ ହେବ ରାଜାଙ୍କୁ ଘୋର ଅପମାନ !

ଭାଲୁଆ—ନାହିଁ ଆମର ଅଭ୍ୟାସ ଆଗରୁ ବିଶେଷ;
ତେଣୁ ସମ୍ବୋଧନେ ବାରମ୍ବାର ଘଟେ ଭ୍ରମ ।

ସିଂହ—ଏଣିକି ହୋଇବ କିନ୍ତୁ ଅତି ସାବଧାନ,
ନଚେତ୍ କରିବଇଁ ମୁଁ ଦଣ୍ଡର ବ୍ୟବସ୍ଥା ।

ବାଘ ନିଶ୍ଚୟ ! ନିଶ୍ଚୟ !

ଭାଲୁଆ—ଶୁଣନ୍ତୁ ମୋ କଥା ବାରେ ହେ ସିଂହ ସମ୍ରାଟ୍ !
ମନରେ ନିନ୍ଦୁଛ କିଆଁ ମୋ'ପରି ମନ୍ତ୍ରୀକୁ ?
ରହିଛି ମୁଁ ବ୍ୟସ୍ତ ସଦା ଅଭିଷେକ କାମେ;
ତଳେ ମାତ୍ର ନିଦ ନାହିଁ ଆଖିକି ମୋହର,
ନାହିଁ ପଡ଼ୁଛି ଦାନା ଆଉ ପେଟରେ ରତିଏ ।

ସିଂହ—କିବା ଏତେ ଆୟୋଜନ କରୁଛ ହେ ମନ୍ତ୍ରି !
ଅଭିଷେକ-ଦିନେ ଏହି ଦରବାର-ସ୍ଥାନେ
ସମ୍ରାଟଙ୍କୁ କେହି ଜଣେ ନ କଲା ଆଦର
କେହି ଜଣେ ସସମ୍ମାନ ନ କଲା ପ୍ରଣାମ !

ଭାଲୁଆ—ପ୍ରଣାମ, ପ୍ରଣାମ ମହିମ !

ସିଂହ—ସା, ସାଧୁ ମନ୍ତ୍ରିବର !
କିନ୍ତୁ ମନ୍ତ୍ରି, ଏ ତ ନୁହେଁ ସୁନ୍ଦର ବ୍ୟବସ୍ଥା—
ମାଗିଲା ପ୍ରଣାମ ଆଉ ଯାଚିଲା କଲ୍ୟାଣ !

ଭାଲୁଆ—ଧୈର୍ଯ୍ୟ ଧରନ୍ତୁ ମହିମା !
ନ ହୁଅନ୍ତୁ ବ୍ୟସ୍ତ ।
ଜଙ୍ଗଲର ବୁଦ୍ଧିହୀନ ଜାନୁଆର ଆମେ,
ଅଭ୍ୟାସ ନାହିଁ ଆମର ଏ ସକଳ କାମେ ।

ଆସ୍ତେ ଆସ୍ତେ ଶିଖିଯିବୁ ସବୁ ରୀତିନୀତି ।
ତେଣିକି ପାଇବ ଦେବ ! ବହୁ ନମସ୍କାର ।
ଯେବେ ତୁମେ ବସେ ହେବ ଦରବାରେ ଆସି,
ବାଜିବ ଶଙ୍ଖ ମହୁରୀ ତୂରୀ ରାଶି ରାଶି,
ଗଧ ଗାଉଥିବ ଗୀତ, ନାଚିବ ଗଧିଆ,
ଉଠୁଥିବ ତାଳ ମାନ ତାଥିଆ ତାଥିଆ ।

ସିଂହ—ଧନ୍ୟ ଧନ୍ୟ ବୁଦ୍ଧିମାନ୍ ମନ୍ତ୍ରିବର ମୋର !
କିନ୍ତୁ ମନ୍ତ୍ରି !
ବଣମଧ୍ୟେ କରିଛକି ପ୍ରଚାର-ବ୍ୟବସ୍ଥା
ଆମର ଏ ଅଭିଷେକ-ଶୁଭ-ସଂବାଦର ?
ଆସିବେ ତ ସବୁ ପଶୁ ଏହି ଦରବାରେ ?

ବିଲୁଆ—ପ୍ରଚାରର ସୁବ୍ୟବସ୍ଥା କରିଛି ମୁଁ ଦେବ !
ନିଜେ ବୁଲି ବୁଲି ଚାରିଆଡ଼େ
ଦେଇଛି ସଂବାଦ ହୁକେ-ହୋ ଶବଦେ ।
କହିଛି ମୁଁ ହାତୀ-ହରିଣଙ୍କୁ
ଆଉ ଦାୟିତ୍ୱ ଦେଇଛି ହନୁ ବୀରବରେ
ଖବର ସେ ଦେବେ ଅନ୍ୟ ପଶୁକୁଳେ ।

ସିଂହ—ଦେଇଛ ତ ତାଙ୍କ ସଙ୍ଗେ ଢେଙ୍ଗରା ଗୋଟିଏ ?

ବିଲୁଆ—ଢେଙ୍ଗୁରାର ପ୍ରୟୋଜନ ନାହିଁ ସିଂହରାଜ !
ହନୁ ଚାରିଆଡ଼େ ବୁଲି, କିଳିକିଳା ନାଦେ
କରିବ ପ୍ରଚାର ଏହି ଅଭିଷେକ-ବାର୍ତ୍ତା ।

ବାଘ—ଏଇ ତ ଆସିଲେଣି ହନୁବୀର ।

ମାଙ୍କଡ଼—(ପ୍ରବେଶ କରି) କହନ୍ତୁ ମଣିମା !

ସିଂହ—ବଡ଼ ଅଭଦ୍ର ତ ତୁମେ ହନୁ ମହାବୀର,
ନ କର ପ୍ରଣାମ, କଲ କଥାବାର୍ତ୍ତା !
ମାଙ୍କଡ଼—ନମସ୍କାର ଦେବ !
ସିଂହ—ସାଧୁ ! ସାଧୁ ହନୁ ମହାବୀର !
ଆଚ୍ଛା ହନୁ, ଚର-କାମ ନେଇଥିଲ ତୁମେ,
ଚାରିଆଡ଼େ ଭଲ କରି କଲ ତ ପ୍ରଚାର
ଆମ ଅଭିଷେକ-କଥା ?
ମାଙ୍କଡ଼—ନ ହେଲା ସମ୍ଭବ ।
ବାଘ—ଏ ତ ବଡ଼ ଖରାପ ଖବର !
କିନ୍ତୁ କାହିଁ ?
ମାଙ୍କଡ଼—କରିଥିଲି ଇଚ୍ଛା,
ଡେଇଁ ଡେଇଁ ଗଛେ ଗଛେ,
ଡାଳେ ଡାଳେ ମୁହିଁ
ଅଭିଷେକ ବାର୍ତ୍ତା କରିବି ପ୍ରଚାର
କିଚିକିଚିଶବଦରେ;
କିନ୍ତୁ···
ଭାଲୁଆ—କିନ୍ତୁ···
କିବା ଅସୁବିଧା·ସେଥି ହେଲା ହନୁବୀର ?
ସିଂହ—କିଏ କିବା ଦେଲା ବାଧା ?
କହ ନାମ ତା'ର
ଯାଇ ଏଇକ୍ଷଣି ତାକୁ କରିବି ମୁଁ ବଧ ।
ମାଙ୍କଡ଼—ନା ମଣିମା !
ଅନ୍ୟ କେହି ଦେଇ ନାହିଁ ବାଧା,
କିନ୍ତୁ ଘଟିଗଲା·ଏକ ମହା ଅସୁବିଧା ।

ବାଲୁଆ—ଅସୁବିଧା !

ସିଂହ—କାହାର ଏତେ ସାହସ, ଏତେ ଦମ୍ଭ, ଏତେ ବଳ ?
ଅସୁବିଧା ଭିଆଇଲା ମୋ ଚରର ପୁଣି !
କହ, କହ ତା'ର ନାମ,
ଦେବି ତା'ରେ ମୁଁ ଦଣ୍ଡ ଉଚିତ ।

ମାଙ୍କଡ଼—କି କହିବି ଦେବ !
ସେହି ଦୁଃଖର ଖବର,
ଗଛେ ଗଛେ ପାଚିଥିଲା ବହୁ ମିଠାଫଳ ।
ତାକୁ ଦେଖି ବୋହିଲା ପାଟିରୁ
ଧାର ଧାର ହୋଇ ଲାଳ,
ବର୍ଷାଦିନ ଜଳଧାର ପରି,
ତେଣୁ ଖାଇବାର ଲୋଭ ନ ପାରି ସମ୍ଭାଳି
ହୋଇଗଲି ବ୍ୟସ୍ତ ଭୋଜନ କାମରେ ।

ବାଲୁଆ—ହେଲ ବ୍ୟସ୍ତ ଭୋଜନ କାମରେ !
ଭୁଲିଗଲ ରାଜାଦେଶ, ନିଜର କର୍ତ୍ତବ୍ୟ ଖାଦ୍ୟଲୋଭେ ?



ସିଂହ—(ହସି) ଦେଖ ହନୁବୀର !
ଶରଦିନ ପେଟୁ ତୁମେ ।

ରାଜାଦେଶ ଭୁଲି ଗିଳିବାରେ ଦେଲି ମନ !
ହଉ, ଯାଅ ତୁମେ ଅତି ଶୀଘ୍ର ବନମଧ୍ୟେ
ବଜାଇ ନାଗରା ଦେଇଦିଅ ଏ ସଂବାଦ ।

ମାଙ୍କଡ଼—ଯାଉଛ ମଣିମା !
ହେଲେ, କାହିଁ ମୋ ନାଗରା ?

ବଲୁଆ—ଗଣ୍ଡା ଗଣ୍ଡା ରହିଅଛି ଉଆସେ ଛାମୁଙ୍କ ।

ମାଙ୍କଡ଼—ଛାମୁଙ୍କ ଉଆସେ ?

ବଲୁଆ—ହଁ ହନୁ !
ଯେତେ ପଶୁ, ଯେତେ ମଣିଷ ଖାଇଛନ୍ତି ପଶୁରାଜ,
ସେମାନଙ୍କ ମୁଣ୍ଡ ପଡ଼ିଛି ଅନେକ ।

ମାଙ୍କଡ଼—ସେ ମୁଣ୍ଡ ତ ଆମେ ନ ଛୁଇଁବୁ କେବେ
ହୋଇ ଧର୍ମବୀର ରାମ-ଚର
ଦରକାର ନାହିଁ ମୋ ନାଗରା ।
ଖେଙ୍କା-ଖେଁ ଶବଦେ କେବଳ
ସହଜେ ମୁଁ ଦେବି ଏ ସଂବାଦ ।

ସିଂହ—ହେଉ ତାହା,
ନାହିଁ ଆମ ଆପତ୍ତି ତହିଁରେ ।

ବଲୁଆ—ଆଗରୁ ଅନେକଙ୍କୁ ମୁଁ ଦେଇଛି ସଂବାଦ ।
ଚେତାଇଦେବ ତାହାଙ୍କୁ ଆଉ ଥରେ ଯାଇ ।
ଡାକିଆଣିବ ଏଥିକି ନ କରି ବିଳମ୍ବ ।

ସିଂହ—ଦେଖ ହନୁବୀର !
ବଡ଼ ଗ୍ଳାକ୍ ତ ତୁମେ,

ଦସ୍ଥା କର କୌଶଳରେ ବୁଝିବ ଖବର,
ହାତୀ ଆମ ବିପକ୍ଷରେ କରେ କି ମନ୍ତ୍ରଣା ।
ବିଲୁଆ—କି କରିବ ହାତୀ ବା ଆମର !
ମୋଟାମୋଟାଏ ସିଂନା,
ହେଲେ, ନାହିଁ କମା ବୁଦ୍ଧି ତା'ର ।
ମାଙ୍କଡ଼—ତେବେ ଯାଉଛି ମୁଁ ଦେବ !
ସିଂହ—ଯାଅ ଅତି ଶୀଘ୍ର ।
ହନୁ—(ଲମ୍ଫ ଦେଇ ଓ ଖେଙ୍କା-ଖେଁ ଶବ୍ଦ କରି) ସବୁକେ ଶୁଣ !
ଆଜି ପ୍ରବଳ ପ୍ରତାପୀ ମହାମାନ୍ୟ ସିଂହଙ୍କର
ହେବ ଶୁଭ ଅଭିଷେକ ବଣର ସମ୍ରାଟ୍‌ରୂପେ ।
( ହନୁ ଚାଲିଗଲା । )
ସିଂହ—ମନ୍ତ୍ରିବର !
କାହିଁ ଆମ ରତ୍ନ-ସିଂହାସନ ?
କାହାପରେ ବସି ଆମେ ହେବୁ ଅଭିଷିକ୍ତ ?
କାହିଁ ଆମ ବେଶଭୂଷା, ପୋଷାକ, ମୁକୁଟ ?
କି ପିନ୍ଧିବୁ ଆମେ ଅଭିଷେକ ସମୟରେ ?
କାହିଁ ବା ଆସିବ ଛତ୍ରୀ, ଚାମର, ବାଇଦ ?
ବିଲୁଆ—ଯଥାବିଧି କରିଛି ବ୍ୟବସ୍ଥା ।
ପତ୍ର-ଫୁଲେ ହେବ ତୁମ ବେଶଭୂଷା, ମୁକୁଟ ସୁନ୍ଦର ।
ଚକ୍‌କଣ ପଥରଟିଏ ହେବ ରତ୍ନ-ସିଂହାସନ ।
ଛତ୍ରୀ-ଚାମରର ହେବ ସେପରି ବ୍ୟବସ୍ଥା ।
ସିଂହ—ଏ କି ହେବ ଉଚିତ ବ୍ୟବସ୍ଥା ଅଭିଷେକ ଲାଗି ?
ବିଲୁଆ—ସେତିକି ହେବ ମହାରାଜ !
ପଶୁଜାତି ଆମେ,
କାହୁଁ ମିଳିବ ଆମକୁ
ପ୍ରକୃତ ରାଜପୋଷାକ, ଛତ୍ରୀ ବା ଚାମର ?

ସଂହ—କାଇଁ ?
ମାର ଏକ ରାଜା ଆଣିପାରିବା ଏସବୁ ।

ବଲୁଆ—ରାଜା ହୋଇ କେହି ଆଉ ନାହିଁ ଏ ସଂସାରେ,
ସବୁଠାରେ ଚାଲିଅଛି ପ୍ରଜାର ଶାସନ ।
ତେଣୁ ଏଥି ଯାହାସବୁ ମଳବ କିନଷ,
ତାକୁ ନେଇ ଚଳାଇବା ଅଭିଷେକ-କାମ ।

ସିଂହ—ଆଉ ପ୍ରଜା-ପାଣ୍ଟକଙ୍କ ବସିବା-ବ୍ୟବସ୍ଥା ?

ବଲୁଆ—ସେସବୁ ବ୍ୟବସ୍ଥା କରାଯିବ ବାଧ୍ୟମତେ ।

ସିଂହ—ସାଧୁ ମନ୍ତ୍ରି !
କହ ତେବେ କେ କରିବ ମନ୍ତ୍ରପାଠ ?

ବଲୁଆ—ବନ୍ୟଜନ୍ତୁ ଆମେ,
ମନ୍ତ୍ର କିବା ଆମ ଦରକାର ?

ସିଂହ—କି ଆଶ୍ଚର୍ଯ୍ୟ !
ଯେତେବେଳେ ଆମେ ହେବୁ ସିଂହାସନଲାଗି,
ପଢ଼ାଯିବ ନାହିଁ ମନ୍ତ୍ର ତହିଁ ସଂସ୍କୃତରେ ?

ବଲୁଆ—ସଂସ୍କୃତରେ ମନ୍ତ୍ର !
ତାହା କି ସମ୍ଭବ ଏଥି ?
ନା ଦେବ !
ବନମଧ୍ୟେ ନାହିଁ କେହି ସଂସ୍କୃତ-ପଣ୍ଡିତ
ତେଣୁ ପଶୁ-ପରାକୃତେ ହେବ ଆମ ମନ୍ତ୍ରପାଠ ।

ସିଂହ—ହେଉ ତାହା ।
ତେବେ କିଏ କରିବ ସେ କାମ ?

ବାଲୁଆ—ସୁଯୋଗ୍ୟ ସେଥିକି ଦେବ !
ଏକମାତ୍ର ଗଧ ମାନ୍ୟବର,
ଅତି ଉଚ୍ଚ ସୁମଧୁର କଣ୍ଠସ୍ୱର ତା'ର ।

ସିଂହ  ତେବେ ମନ୍ତ୍ରି !
ଡାକ ତାଙ୍କୁ ନ କର ବିଳମ୍ବ ।

ବାଲୁଆ—ଯେ ଆଜ୍ଞା ମହିମା !
କରୁଛି ବ୍ୟବସ୍ଥା ତା'ର ।  [ବାଲୁଆ ଚାଲିଗଲା]

ସିଂହ—ଦେଖ ବାଘ !
ସବୁବେଳେ ମାଂସଲୋଭୀ ତୁମେ,
ମଣିଷ ବା ପଶୁ କାହିଁ ଦେଖିଲେ ଦୈବାତ୍,
ତଳେ ମାତ୍ର ଭଲ-ମନ୍ଦ ନ କରି ବିଚାର
ମାଡ଼ିବସି ଖାଇଯାଅ ତାଙ୍କୁ ସଙ୍ଗେ ସଙ୍ଗେ ।

ବାଘ—ଆପଣ ତ ସେହିପରି ମାରି ଖାଇଯାନ୍ତି
ଜୀବଙ୍କୁ ଲେ ନ ଦେଖାଇ ଦୟାମାୟା ଟିକେ ।

ସିଂହ  ଆମେ ବର୍ତ୍ତମାନ ରାଜା ।
ନ କର ଟିପ୍ପଣୀ ଆମ କାର୍ଯ୍ୟକଳାପରେ ;
କିନ୍ତୁ ତୁମେ ଦେହରକ୍ଷି !
ସବୁବେଳେ, ସବୁ କାର୍ଯ୍ୟେ ଉଚିତ ତୁମର
ଧୈର୍ଯ୍ୟ ଓ ସଂଯମ, ଛାଡ଼ି ଖାଇବାର ଲୋଭ ।

ବାଲୁଆ—(ପ୍ରବେଶି) ପଶୁମାନେ ଦଳ ଦଳ ଆସିଲେଣି ଦେବ !
ବର୍ତ୍ତମାନ ହୁଅନ୍ତୁ ପ୍ରସ୍ତୁତ ଅଭିଷେକ ପାଇ ।
ଆସନ୍ତୁ, ଆସନ୍ତୁ ହାତୀ, ହରିଣ, ଠେକୁଆ !
[ ହାତୀ, ହରିଣ, ଠେକୁଆ ପ୍ରବେଶ କଲେ ]

ସିଂହ—ଆସନ୍ତୁ, ଆସନ୍ତୁ ପଶୁଗଣ !
ଜଣାଉଛି ସ୍ୱାଗତ ମୁଁ ଆପଣମାନଙ୍କୁ ଅତି ଆନନ୍ଦରେ ।



ବିଲୁଆ—ବସନ୍ତୁ , ବସନ୍ତୁ ବାଛି ନିଜ ନିଜ ସ୍ଥାନ ।
[ ହାତୀ, ହରିଣ ପ୍ରଭୃତିଙ୍କୁ ବିଲୁଆ ଇଙ୍ଗିତ ଦେଲା; କିନ୍ତୁ ସେମାନେ ସଶଙ୍କଭାବରେ ଅଳ୍ପ ଆଗେଇ ଠିଆହେଲେ ।]

ସିଂହ—କାହିଁ ଗଲେ ଅନ୍ୟମାନେ—ଘୋଡ଼ା, ଗଧ, ବାର୍ହା ?

ହାତୀ—ଅନ୍ୟମାନେ ଆସୁଥିବେ ହୋଇ ସଜବାଜ ।
ତେବେ ଆସିଛୁ ତ ଆମେମାନେ
ପ୍ରତିନିଧିରୂପେ ସବୁ ପଶୁଙ୍କର,
ସଭାକାର୍ଯ୍ୟ କରନ୍ତୁ ଆରମ୍ଭ ।

ସିଂହ—ତେବେ ବସନ୍ତୁ ଆପଣ ହାତୀ ମାନ୍ୟବର !
ମନ୍ତ୍ରି ! କର ଶୀଘ୍ର ଅଭିଷେକ ଆୟୋଜନ ।

ବିଲୁଆ—ଯେ ଆଦେଶ ମହିମା !
ଯାଅ ଦେହରକ୍ଷି !
ନେଇଆସ ଅଭିଷେକ-ସାମଗ୍ରୀସକଳ ।

ବାଘ—ଆଣିବି ଏକ୍ଷଣି, ସବୁ ରହିଛି ପ୍ରସ୍ତୁତ । [ବାଘ ଚାଲିଗଲା ।]

ସିଂହ—ଆଚ୍ଛା, ଶଶା ମହାଶୟ୍ୟ !

ଠେକୁଆ—କହନ୍ତୁ ମଣିମା !

ସିଂହ—ଆସ ନକଟକୁ, ବସ ପାଶେ ମୋର ।
ଯେଣୁ ତୁମେ ନହାତ ନିରୀହ ଜୀବ,
ତୁମକୁ ମୁଁ କରେ ଅତ ସ୍ନେହ, ଅତ ଶ୍ରଦ୍ଧା ।

ଠେକୁଆ—ନା ଦେବ !
ଡର ଲାଗେ ··

ସିଂହ—ଡର ଲାଗେ !
ଆଦରେ ଯାହାକୁ ବରିଅଛ ରାଜାରୂପେ,
ତାଙ୍କୁ ପୁଣି ଡରୁଅଛ ତୁମେ ?

ଠେକୁଆ—କହନ୍ତୁ ମଣିମା !
କ'ଆଦେଶ ହେଉଛି ମୋ ପ୍ରତ—
ତୁଲାଇବ ସବୁ, ରହ ଦୂରେ ଶକ୍ତମତେ ।

ସିଂହ—(ସ୍ୱଗତ ଆଶ୍ଚର୍ଯ୍ୟ ଏ କଥା !
ତେବେ ଏତେ ଦୁଃଖ, ଏତେ ଶ୍ରମ ହେବ କ ବଫଳ !
(ପ୍ରକାଶ୍ୟରେ) ଶୁଣ, ଶୁଣ ହେ ଠେକୁଆ !
ତୁମେ ମୋର ଅତ ପ୍ରିୟ୍ୟ;
ତେଣୁ ଡର କାହିଁ ?
ଆଚ୍ଛା ମନ୍ତ୍ରି !
କାହାନ୍ତ ମୋ ଘୋଡ଼ା ମାନ୍ୟବର ?
କାହାପରେ ହୋଇଣ ସବାର ଅଭିଷେକପରେ
କରିବୁ ବହାର ଆଜେ ଜଙ୍ଗଲମଧ୍ୟରେ ?

ବଲୁଆ—କହ ନ ପାରିବ ମୁହଁ ଘୋଡ଼ାର ଖବର ।
ହେଇ, ଆସିଲେଣି ହନୁ,
ପଚାରନ୍ତୁ ତାଙ୍କୁ ।

ମାଙ୍କଡ଼—(ପ୍ର.ବଶି) କହୁଛି ସବୁ ପଶୁଙ୍କୁ ଶୀଘ୍ର ଆସିବାକୁ ।

ସିଂହ—ଆଚ୍ଛା, ହନୁ ମହାଶୟ !
ପାଇଛନ୍ତି ତ ଖବର ଘୋଡ଼ା ବୀରବର ?
ଆସିବେ ତ ସେହି ଆଜି ଆମ ଦରବାରେ ?

ମାଙ୍କଡ଼—ନା ମଣିମା !
ନାହିଁ କଲେ ଘୋଡ଼ା ବାରବାର ।

ସିଂହ—ନାହିଁ କଲେ !
କି କାରଣେ ହନୁ ମହାଶୟ ?

ମାଙ୍କଡ଼—କହିଲେ,
ବିଶ୍ୱାସ ନାହିଁ ମୋହର ସେ ଦୁଷ୍ଟ ସିଂହକୁ ।
ହେଲାଣି ସେ ବୁଢ଼ା,
ନ ପାରୁଛି ଧରି ପଶୁ,
ତେଣୁ ବଲୁଆ ସାଙ୍ଗରେ କରିଛି ମସୁଧା,
କଉଶଳେ କରିବାକୁ ପଶୁଙ୍କୁ ଭକ୍ଷଣ ।

ସିଂହ—ଭକ୍ଷଣ !
ରକ୍ଷଣ କରିବା ପାଇଁ ହୋଇଅଛୁ ରାଜା
ଆଇନ୍‌ଦ୍ୱାରା ପାଳିବୁ ଯେତେ ଆମ ପ୍ରଜା ।
ମିଛଟାରେ କାହିଁ ପାଇଁ କରନ୍ତି ସନ୍ଦେହ ?
ଆଚ୍ଛା, ହୋଇଛି ତ ଦେଖା ତୁମ ବାରହା ସଙ୍ଗତରେ ?
ଆସିବେ ତ ସେହି ଆଜି ଏହି ଦରବାରେ ?

ମାଙ୍କଡ଼— ସେ କ'ଣ ଏଠି ନ ଆସିବେ ସିଂହ ମହାରାଜ !
ସିଂହ —କି କାରଣେ, କି କାରଣେ ହନୁ ମହାଶୟ ?
ମାଙ୍କଡ଼— କହିଲେ ସେ,
ମହାହିଂସ୍ର, ମହାଖଳ ସିଂହ;
ଦୂରୁ ଦେଖିଦେଲେ ତା'ର ସେହି ଭୟଙ୍କର ମୁଖ,
ଦାଢ଼ୁଆ ଦାନ୍ତ, ଲମ୍ବ ଜିଭ, ମୁନିଆ ନଖ
ଛାତିରେ କଳିଜା ମୋର ହୋଇଯାଏ ପାଣି ।
ସିଂହ—ସର୍ବନାଶ !
ଏ ତ ବଡ଼ କଦର୍ଯ୍ୟ ସଂବାଦ !
ରାଜାଙ୍କୁ ଡରନ୍ତି ପ୍ରଜା କମ୍ପା ଭୟ ପାଇ ?
ହେଲା, ଯେଉଁମାନେ ଆଜି ନ ଆସିଲେ ଏଠି
ନ ବରିବୁ କେବେ ତାଙ୍କୁ ପାତ୍ର-ମନ୍ତ୍ରୀରୂପେ ।
ଯେଉଁ ବନ୍ଧୁଗଣ ଆସିଛନ୍ତି ଏ ସଭାରେ,
ତାଙ୍କୁ ଧରି ସାରିଦେବା ଅଭିଷେକ କାର୍ଯ୍ୟ ।
ବିଲୁଆ—ହେଉ ତାହା ଦେବ !
ସାରନ୍ତୁ ଏ ଶୁଭକାର୍ଯ୍ୟ ଶୀଘ୍ର ।
ସିଂହ—ଆଜି ମୋର ବଡ଼ ଆନନ୍ଦର ଦିନ—
ବାଘ, ଠେକୁଆ, ମାଙ୍କଡ଼, ହରିଣ, ବିଲୁଆ
ହୋଇଛନ୍ତି ଠୁଳ ସର୍ବେ ଏହି ଦରବାରେ ।
ଆଉ ଆସିଛନ୍ତି ମୋର ମହାମିତ୍ର ହାତୀ ।
କିନ୍ତୁ ବନ୍ଧୁ ଗଜରାଜ !
କହୁନାହଁ କାହିଁ କଥା ?
ମନେ ମନେ କରିଛ କି ସ୍ଥିରି,
ହେବ ତୁମେ ମୁଖ୍ୟ ସେନାପତି ଆମ ସୈନ୍ୟଥାଟେ ।

ଘଉଡ଼ାଇଆଣି ବଣୁ ଶୁ ଦଳ ଦଳ
ପ୍ରତିଦିନ ଆମ ପାଖେ କରିବ ହାଜର ।

ହାତୀ—ନା,
ନ ପାରିବ ନେଇ ମୁହିଁ ସେ ଦାୟିତ୍ୱ କେବେ ।

ସିଂହ—କାରଣ ?

ହାତୀ—ସେ ପଶୁଙ୍କୁ ଯଦି କଉଡ଼ିଲେ ଖାଇଯିବ ତୁମେ,
ଜୀବହତ୍ୟା-ପାପ ନିଶ୍ଚୟ ଲାଗିବ ମୋତେ ।

ସିଂହ—ଶୁଣ ବନ୍ଧୁ !
କରି ମୁଁ ଦୃଢ଼ ପ୍ରତିଜ୍ଞା କହୁଅଛୁ ଆଜି
ବାଲାତ୍କାରେ ଜୀବ-ବଧ ନ କରିବ କେବେ ।
ହଉ, ହୋଇଗଲା ବେଳ, ଯାଉଛି ମୁଁ
ବେଶ ବଦଳାଇ ଆସିବ ଏ ସ୍ଥାନେ ଅଭିଷେକପାଇଁ
ମନ୍ତ୍ରିବର !

ଦିଅ ସବୁ ପଶୁଙ୍କୁ ନିର୍ଦ୍ଦେଶ—
ଆମେ ଏହି ଦରବାରେ ଆସିବା ସମୟେ
ସର୍ବେ କରିବେ ଆମକୁ ପ୍ରଣାମ ବହୁତ ।
ମାନି ଆଦବ-କାଇଦା
ରହିଥିବେ ସ୍ଥିର ନିଜ ନିଜ ସ୍ଥାନେ ।
ଆମେ ଡାକିବୁ ଯାହାଙ୍କୁ,
ଆସିବେ ସେ ଆମ ପାଶେ ।

ବିଲୁଆ—ହେଲେ ମହିମା !
ତରତର ନ ହୋଇବେ କରିବାକୁ ନୀତିସମାପନ
ସବୁ ହେବ ଧୀରେ, ଆସ୍ତେ ।

ସିଂହ—ନା ମନ୍ତ୍ରି !
ମନ ମୋର ହେଲାଣି ଉଚ୍ଛନ୍ନ
ଶୀଘ୍ର ବସିବାକୁ ସିଂହାସନପରେ,
ବିଧିମତେ କରିବାକୁ ରାଜ୍ୟର ଶାସନ ।

ବିଲୁଆ– ଯେ ଆଦେଶ ଦେବ !
କରୁଛୁ ବ୍ୟବସ୍ଥା ଶୀଘ୍ର ।
ଶୁଣ ସବେଁ ମନ-କର୍ଣ୍ଣ ଦେଇ
ହେବ ଆଜି ଅଭିଷେକ ଏଥି
ସିଂହଦେବଙ୍କର ବନ-ମହାରାଜରୂପେ ।
ବୁଝିନିଅ ଯିଏ ଯାହା କାମ ।

ବାଘ—କହନ୍ତୁ, କହନ୍ତୁ ମନ୍ତ୍ରି ମହାଶୟ !

ବିଲୁଆ– ଅଭିଷେକ ସମୟରେ ଗଧ, ହାତୀ ଦୁହେଁ
ରହିଥିବେ ରଜାଙ୍କର ଦୁଇ ପାରୁଶରେ,
ଧରି ଚ୍ଛମର ଆଲଟ
ଠେକୁଆ ହୋଇବେ ଛିଡ଼ା ରାଜାଙ୍କ ଆଗରେ···

ଠେକୁଆ– କି କଥା ଏ !
ଠିଆହେବ ସିଂହ ଆଗେ ମୁହିଁ !
ଡର ଲାଗେ ମୋତେ···

ସିଂହ—ଡର କାହାକୁ ତୁମର ?
ସଭିଏଁ ତ କରୁଛନ୍ତି ତୁମକୁ ଆଦର ।
ହେ ଠେକୁଆ ବୀର !
ଥିଲେ ତୁମେ ମୋର ପାଶେ
ନ ଥିବ ଦୁଃଖ-ଆପଦ କଦାପି କେବେ ତ !

ବଲୁଆ—ଆଜ ନିଜେ ମୁହିଁ ମୋର ହାତେ
ପିନ୍ଧାଇବି ରାଜାଙ୍କୁ ମୁକୁଟ ଅଭିଷେକବେଳେ ।
[ ଗଧ ପହଞ୍ଚିଲା ]
ଶୁଣ ଗଧ ମହାଶୟ !
ଅଭିଷେକସମୟରେ ପଢ଼ିବ ମନ୍ତ୍ରକାଣ୍ଡିଏ
ବଡ଼ପାଟି କରି ।
ଅନ୍ୟ ପଶୁମାନେ ଦେବେ ଆନନ୍ଦର ଧ୍ୱନି ।
ଚାଲନ୍ତୁ ମଣିମା !
ଆସବା ଭିତରୁ ଆମେ ଥି
ଦରବାର-ବେଶେ ଥିର ଥିର ପାଦେ ।
ସିଂହ—ଚାଲ ମନ୍ତ୍ରି, ଚାଲ ଦେହରକ୍ଷି !
[ସିଂହ, ବାଘ ଓ ବଲୁଆ ଚାଲିଗଲେ । ଅନ୍ୟ ପଶୁମାନେ ଭୟରେ ଏପଟ ସେପଟ ହେଲେ; ହାତି କିନ୍ତୁ ନିଶ୍ଚଳ ହୋଇ ଠିଆହୋଇଥାଏ ।]
ଠେକୁଆ—ଗଜରାଜ !
ବଡ଼ ଡର ଲାଗେ ମୋତେ
ଦେଖି ଏସବୁ ବ୍ୟବସ୍ଥା ।
କିବା ଅଭିସନ୍ଧି ଅଛି ସିଂହମନେ ?
ହରିଣ—ମୋର ମଧ୍ୟ ମହାଡର ଏ ସିଂହ-ବାଘଙ୍କୁ ।
ଭାବୁଛି ମୁଁ ଆମକୁ ଖାଇବାଲାଗି ଏସବୁ ଫିକର ।
ମାଙ୍କଡ଼—ତୁମେସବୁ ଅତି ଭୀରୁ ଡରକୁଳାଦଳ !
ଆଜ ଏଥି ଆମେସବୁ ହୋଇଛେ ଏକାଠି,
ଦଳରେ ଅଛନ୍ତି ଆମ ହାତୀ ମହାଶୟ ।

ଯଦି ସିଂହ ବାଘ-ଭାଲୁଆ-ସାହାଯ୍ୟେ
କରନ୍ତି ଅନ୍ୟାୟ-ଅତ୍ୟାଚାର ଆମପ୍ରତି,
ସର୍ବେ ମିଳି କରିବା·ତାହାର ପ୍ରତିକାର ।

ହାତୀ—ଠିକ୍ କଥା କହୁଛନ୍ତି ହନୁ ମହାଶୟ !
ଅବଶ୍ୟ ଖାଉଛୁ ଆମେ ଘାସ-ପତ୍ର-ମୂଳ;
ମାତ୍ର ଆମେ ନୋହୁ ଭୀରୁ ଅବା ଡରକୁଳା ।
ସିଂହ, ବାଘ ଆଦି ଯେତେ ହିଂସ୍ର ପଶୁଗଣ
ସବୁ କାଳେ, ସବୁବେଳେ
ବହୁ ଅତ୍ୟାଚାର କରନ୍ତି ଜଙ୍ଗଲେ,
ନିରୀହ ପଶୁଙ୍କୁ ଧରି ଖାଇଯାନ୍ତି ବଳାତ୍କାରେ ।
ଏବେ ଧରିଛନ୍ତି ଭେକ
ସହଯୋଗ-ସ୍ନେହ-ଶାନ୍ତି-ବନ୍ଧୁତାର ।
ତେଣୁ ତାଙ୍କୁ ପ୍ରଥମରୁ ଦେବା ନାହିଁ ବାଧା;
କିନ୍ତୁ ଯଦି ସେମାନେ ବିଶ୍ୱାସ ଭାଙ୍ଗି
ଆମପ୍ରତି ଆଚରନ୍ତି ହିଂସା-ଅତ୍ୟାଚାର,
ସର୍ବେ ମିଳି ପ୍ରତିକାର କରିବା ତାହାର,
ଉଚିତ ଉତ୍ତର ଦେବା ଏହି ଠକାମିର, ଭଣ୍ଡାମିର ।

ଠେକୁଆ—ହେଉ ତାହା ।

ହରିଣ—କରାଯାଉ କାର୍ଯ୍ୟ ହାତୀଙ୍କ ନିର୍ଦ୍ଦେଶମତେ ।

ସମସ୍ତ ପଶୁଗଣ—ଜୟ, ହାତୀ ମହାରାଜଙ୍କର ଜୟ !



# ଚତୁର୍ଥ ଦୃଶ୍ୟ

[ ଜଙ୍ଗଲର ସେହି ସ୍ଥାନ । ବିଭିନ୍ନ ପଶୁଙ୍କ ଶବ୍ଦ ଶୁଣାଗଲା । ପରେପରେ ବାଜିଉଠିଲା ଶିଙ୍ଗା ଓ ମହୁରୀ । ହାତୀ ଆଦି ପଶୁମାନେ ବିବ୍ରତ ହୋଇ ଠିଆହୋଇଥାନ୍ତି । ମାଙ୍କଡ଼ ଲତାପତ୍ରର ମୁକୁଟ ଆଣି ଥୋଇଲା । ଗଧ ଫୁଲମାଳ ଆଦି ଅଭିଷେକ-ସାମଗ୍ରୀ ଧରି ସିଂହାସନ ପାଖରେ ଠିଆହେଲା । ]

**ବିଲୁଆ**—( ପ୍ରବେଶ କରି ) **ହୁକେ-ହୋ !**

**ସାବଧାନ, ସାବଧାନ ! ସବୁକେ ଶୁଣ !**
**ବୀରାଧିବୀରବରପ୍ରବଳ ପରାକ୍ରମୀ ମହାଜଙ୍ଗଲ-ଈଶ୍ୱର**
**ଅଭିଷେକପାଇଁ ଏଠି ବିଜେ କରିବାକୁ**
**ଆଜ୍ଞା ହେଉଛନ୍ତି.....**

[ ସିଂହ ପ୍ରବେଶ କଲା । ସଙ୍ଗରେ ଦେହରକ୍ଷୀ ବାଘ । ସେମାନେ ଧୀରେ ଧୀରେ ପାହୁଲ ପକାଇ ଆସିଲେ । ସିଂହ ଗଛମୂଳରେ ଖଣ୍ଡିଏ ବଡ଼ ପଥରଉପରେ ବସିପଡ଼ିଲା । ଗଧ ଉଚ୍ଚସ୍ୱରରେ ମନ୍ତ୍ରପାଠ ଆରମ୍ଭ କଲା । ]

**ଗଧ**—( ଶବ୍ଦ କରି ) **ଆଗୁଡ଼ୁ ମାଗୁଡ଼ୁ ତନ ତାଡ଼ୁକୁଡ଼ୁ**

**ଜଙ୍ଗଲରାଜା ଖଣ୍ଡା ଖଜା,**
**ଓଁ ମଙ୍ଗଳଂ ସିଂହ ବନରାଜ,**
**ମଙ୍ଗଳଂ ବିଲୁଆ ଗଜ,**
**ମଙ୍ଗଳଂ ଗୋଧି ନେଉଳ,**
**ମଙ୍ଗଳଂ କୋଚିଲାପଫଳ ।** [ ବିଲୁଆ ସିଂହକୁ ମୁକୁଟ ପିନ୍ଧାଇଲା । ଗଧ ସିଂହଉପରେ ଫୁଲ ପକାଇଲା । ]



[ ପଶୁଦରବାର

ସିଂହ—ଶୁଣ ସର୍ବେ !
ହେଲୁ ଆମେ ରାଜା ଆଜଠାରୁ ।
ଏଣିକି ଯେଉଁ ଆଦେଶ କରିବୁ ତୁମକୁ
ସମସ୍ତେ ପାଳିବ ତାକୁ ନ କରି ବିଳମ୍ବ ।

ବିଲୁଆ—ନିଶ୍ଚୟ ନିଶ୍ଚୟ !
ଆଦେଶ ହେଉ ମହିମା !

ସିଂହ—"ଜୋର ଯା'ର, ମୁଲକ ତା'ର"—
ଏହି ନୀତିରେ ଚାଲୁଥିଲା ଆମ ଏଠା ଜଙ୍ଗଲ-ଶାସନ,
ଆଇନ୍ ବୋଲି ତ କିଛି ନ ଥିଲା ଏଠାରେ,
ନ୍ୟାୟ-ଅନ୍ୟାୟ-ବିଚାର ନ ଥିଲା କାହାର;
କିନ୍ତୁ ଏଣିକି ଚାଲିବ ଆମ ହୁକୁମରେ
ଏଥି ଶାସନ-ବ୍ୟବସ୍ଥା ନ୍ୟାୟ-ନିୟମର ।

ବିଲୁଆ—ଜୟ, ସିଂହ ମହାରାଜାଙ୍କର ଜୟ !
ପ୍ରଭୁ !
ପ୍ରଜାକୁଳ ହୋଇଛନ୍ତି ଠୁଳ ଦରବାରେ,
ଆଜି କିଛି ନୂଆ କଥା ଶୁଣାନ୍ତୁ ଆମକୁ
ଗୋଟିଏ ନୂଆ ହୁକୁମ ହେଉ ତ ଜାହିର ।

ବାଘ—ହଁ ପ୍ରଭୁ !
ହେଉ ଆଜି ଜାରି ଏକ ନୂତନ ଆଦେଶ ।

ସିଂହ—ନିଶ୍ଚୟ, ନିଶ୍ଚୟ !
ହେଲୁ ରାଜା ଯେତେବେଳେ,
ଅବଶ୍ୟ ହୁକୁମ ଏକ କରିବୁ ଜାହିର ।

କିନ୍ତୁ ଶୁଣ ମୋର ପ୍ରିୟ ପ୍ରଜାବୃନ୍ଦ !
ଯେଉଁ ଆଦେଶ ଆମ୍ଭେ କରିବୁ ଏକ୍ଷଣି,
ମାନିଯିବ ତାକୁ ହେବ ନ କରଣ ହେଳା ।

ବଲୁଆ—ନିଶ୍ଚୟ ମଣିମା !

ଠେକୁଆ—କିନ୍ତୁ···

ବଲୁଆ—କିନ୍ତୁ-ଫିନ୍ତୁ ଆଉ ଯିବ ନାହିଁ ଶୁଣା ।
କହନ୍ତୁ ମଣିମା !
ପାଳିବାକୁ ରାଜାଦେଶ
ପ୍ରାଣ ସୁଦ୍ଧା ଦେଇଦେବ ଏ ବଲୁଆ ଦାସ ।

ବାଘ—ମୁଁ ମଧ୍ୟ ପ୍ରସ୍ତୁତ ।

ସିଂହ—ଧନ୍ୟ ତୁମେ ରାଜଭକ୍ତ ବାଘ ଓ ବଲୁଆ !
ତେବେ ଶୁଣ ସବୁ ମୋର ପ୍ରିୟ ପ୍ରଜାଗଣ !
ତୁମେମାନେ ଅତି ମୋର ଆଦରର ଧନ ।
ରାଜା ହୋଇଛି କେବଳ କରିବାକୁ ତୁମ ଉପକାର,
ତୁମ ସୁଖ-ସୁବିଧା-ବ୍ୟବସ୍ଥା ।

ବଲୁଆ - ପ୍ରଭୁ !
ଆମେସବୁ ହେଲୁଣି କୃତାର୍ଥ
ପାଇ ମଣିମାଙ୍କ ବନ-ମହାରାଜ ରୂପେ,
ଆଉ ତଳେ ମାଏ ନ କରନ୍ତୁ ଡେରି ଦେବ !
ଅତ୍ୟନ୍ତ ବ୍ୟାକୁଳ ଆମେ ଶୁଣିବାକୁ ପ୍ରଥମ ହୁକୁମ ।

ସିଂହ—ଶୁଣ,
ଆମେ ଯେତେ ହିଂସ୍ରଜନ୍ତୁ ଅଛୁ ବଣେ
ଖାଇଯାଉ ନିତି ନିତି ଜୀବ ଦଳ ଦଳ ।
ବାଧା-ଅସୁବିଧା ନାହିଁ ତହିଁ କିଛି

ମାତ୍ର, ଯେଣୁ ରାଜତନ୍ତ୍ର ହେଲା ପ୍ରତିଷ୍ଠିତ
ସେପରି ନ ହେବ ଆଉ ବେନିୟମ କାମ ।

ଠେକୁଆ—ଧନ୍ୟ ସିଂହ ମହାରାଜ !
ଧନ୍ୟ ତବ ବୁଦ୍ଧି!

ହରିଣ—ସୁଖ-ଶାନ୍ତି ବିରାଜିବ ବନରାଜ୍ୟେ ଏବେ ।

ହାତୀ—( ହରିଣ ଓ ଠେକୁଆଙ୍କ ପ୍ରତି ) ତେଣୁ କହୁଥିଲି ମୁହିଁ;
ନ ବୁଝି ନ ସୁଝି ଅବିଶ୍ୱାସ ନ କରିବା ସିଂହଙ୍କ କଥାରେ ।
ମନେ ହୁଏ ମୋର,
ଏଣିକି ସର୍ବେ ରହିବା ନିରାପଦେ,
ମହାନନ୍ଦେ ଏ ଜଙ୍ଗଲମଧ୍ୟେ ।

ବିଲୁଆ—ଧନ୍ୟ ଗଜରାଜ ! ଧନ୍ୟ ତୁମ ବିଚାର-ବିବେକ !
ହଉ, ସିଂହରାଜ !
ଦିଅନ୍ତୁ ଆଦେଶ ଶୀଘ୍ର—
ଆମେସବୁ ହେଲୁଣି ବିକଳ
ଶୁଣିବାକୁ ରାଜାଦେଶ, ପାଳିବାକୁ ପ୍ରଜାର କର୍ତ୍ତବ୍ୟ ।

ସିଂହ—ସୁଖଶାନ୍ତିରେ ଏଣିକି ରହ ସର୍ବେ ଏଥି ;
ମାତ୍ର ରାଜକୃତ୍ୟପାଇଁ ପାଳି କରି ନିତି
ଆସିବେ ପାଶେ ଆମର ଗୋଟିଏ ଲେଖାଏଁ ।

ବାଘ—ଶୁଣ ସର୍ବେ,
ରାଜାଦେଶ ହୋଇଲା ଜାହିର ।

ବିଲୁଆ—ପାଳନ କରିବା ତାହା ଦେଇ ପ୍ରାଣବଳି···

ହାତୀ—କିନ୍ତୁ କାହିଁକି ଆସିବେ
ଗୋଟିଏ ଲେଖାଏଁ ପଶୁ ରାଜଦ୍ୱାରେ ନିତି ?

ସିଂହ—କରିବୁ ଭକ୍ଷଣ ଆମେ ।

ଠେକୁଆ—କରିବ ଭକ୍ଷଣ !
ରାଜା ହୋଇଛ ରକ୍ଷଣ କରିବାପାଇଁ କି…
ହରିଣ—ଏ ତ ମହା ଅବିଚାର !
ହାତୀ—କିପାଁ କହୁଛ ସିଂହ ଏ ଧର୍ମଛଡ଼ା କଥା ?
ସିଂହ—କିପାଁ ହେବ ଏହା ଧର୍ମଛଡ଼ା ?
ଚିରଦିନ ନିୟମ ସର୍ବତ୍ର—
ରାଜା କରନ୍ତି ଆଦାୟ
ଟ୍ୟାକ୍ସ—ଟଙ୍କା-ସୁନା-ରୁପା-ଧାନଆକାରରେ;
ମାତ୍ର ପଶୁ ଆମେ,
ଧନ-ରତନରେ ନାହିଁ ଆମ ପ୍ରୟୋଜନ;
ତେଣୁ ପେଟଭରିବାକୁ ଲୋଡ଼ୁ ପଶୁମାଂସ ।
ଠେକୁଆ—ତାହା ବୋଲି ରାଜା ହୋଇ ଖାଇବ ପ୍ରଜାଙ୍କୁ ?
ହରିଣ—ଏ ମହା ଅନ୍ୟାୟ,
ବିଶ୍ୱାସରେ ଦେବ ବିଷ ?
ହାତୀ—ନା, ସିଂହରାଜ !
ନ କର ଏ ପାପ, ଏ ଅନ୍ୟାୟ ।
ସିଂହ—କିପାଁ ଗଜରାଜ !
ହେବ ଏହା ପାପ ବା ଅନ୍ୟାୟ ?
ଖାଇଯାଉଥିଲୁ ଆମେ ପଶୁ ମନଇଚ୍ଛା;
ଏବେ ଯେଣୁ ହେଲା ଏଥି ଆଇନ୍-ଶାସନ,
ପାଳି କରି ନିୟମରେ ଖାଇବୁ ତୁମକୁ ।
ଠେକୁଆ—ଏ ମହା ଅନ୍ୟାୟ !
ନ ରହିବି କ୍ଷଣେ ଏଥି… [ ଠେକୁଆ ଚାଲିଗଲା । ]
ବାଘ—ଶୁଣ ଶୁଣ, ଠେକୁଆ ମହାଶୟ !

ହାତୀ—ଏହି ତେବେ ତୁମ ଉଚିତ ବିଗ୍ଭର ସିଂହ !
ପଶୁଙ୍କୁ ଭୁଲାଇଆଣି କଥାକଉଶଳେ
କହୁଚ ଖାଇବ ତାଙ୍କୁ ଗୋଟି ଗୋଟି କରି ?
ବାଲୁଆ—କେହି କିଛି ଗୋଲମାଲ ନ କର ଏଠାରେ ।
ପ୍ରଥମ ହୁକୁମ ତୁମ ଶୁଣିଗଲୁ, ପ୍ରଭୋ !
ଆଉ ଯଦି କିଛି ଥାଏ ଆଦେଶ ଛାମୁଙ୍କ···
ହରିଣ—ଆଉ କି ଆଦେଶ ଦେବେ ସିଂହରାଜ !
କହୁଛନ୍ତି ଗୋଟି ଗୋଟି ଖାଇବେ ଆମକୁ ।
ନା ନା, ଆମେ କେହି ଏଥି ନ ରହିବୁ ଆଉ ।
[ ହରିଣ ଗ୍ଭଲଗଲା ]
ସିଂହ—ଶୁଣ ଶୁଣ ହରିଣ ସୁବୀର !
କିବା ଅସୁନ୍ଦର କଥା କହିଲୁ ଯେ ଆମେ ?
ନ କରିବୁ ବଣ ଆକ୍ରମଣ,
ନ ଧରିବୁ ପଶୁ ବଳାତ୍କାରେ;
ମାତ୍ର ମୋର ପ୍ରିୟ ପ୍ରଜା ସ୍ୱ-ଇଚ୍ଛାରେ ଆସି
ପହଞ୍ଚିବେ ଗୋଟି ଗୋଟି ହୋଇ ମୋର ପାଶେ,
ଦେବେ ରାଜ୍ୟକାର୍ଯ୍ୟେ ଆତ୍ମବଳି ।
ବାଘ—ଉଚିତ, ସୁନ୍ଦର ବିଗ୍ଭର ଏହା ଅଟେ ରାଜାଙ୍କର !
ସବୁ କାଳେ, ସବୁ ଦେଶେ
ପ୍ରଜାମାନେ ଦେଇ କର, ଭେଟି
ରାଜାଦେଶ କରନ୍ତି ପାଳନ ।
ଏଥି କାହୁଁ ଆମ ପଶୁକୁଳ
ଟଙ୍କା ସୁନା ପାରିବେ ବା ଦେଇ;
ତେଣୁ ଦାନ କରି ନିଜ ଦେହ
ରାଜାଦେଶ କରନ୍ତୁ ପାଳନ ।

ମାଙ୍କଡ଼—ନା, ଏ ପ୍ରସ୍ତାବରେ ଆମେ ନ ହେବୁ ସମ୍ମତ,
କାଣି ଶୁଣି ଆତ୍ମବଳି ନ ଦେବୁ କଦାପି ।

ଗଧ—ନା, ଜାଣିଶୁଣି ମରିବୁ କାହିଁକି ?
କି ଲାଭ-ଆଶାରେ ?
ବରଂ ଯେମିତି ରହିଛୁ, ସେହି ଭଲ ।

ହାତୀ—ଶୁଣ ସିଂହ, ବାଘ ଆଦି ହିଂସ୍ରଜନ୍ତୁଗଣ !
ମନ୍ଦ ପ୍ରକୃତି ତୁମର ନ ଯିବ କଦାପି ।
ଭାବିଥିଲୁ ଆମେ ଶାନ୍ତିକାମୀ ପଶୁଦଳ,
ହେଲେ ମଧ୍ୟ କଷ୍ଟକର,
କରି ସହଯୋଗ ତୁମମାନଙ୍କ ସହିତ,
ସୁଖ-ଶାନ୍ତି ବନେ ଆଣିବୁ ଫେରାଇ;
କିନ୍ତୁ, ତାହା ଅସମ୍ଭବ ତୁମ ଖଳ-ବୁଦ୍ଧି ଯୋଗୁ ।
ପ୍ରମାଣିତ ହେଲା—
ଭକ୍ଷ୍ୟ-ଭକ୍ଷକର ମଧ୍ୟେ ପ୍ରୀତି ଅସମ୍ଭବ ।
ତେଣୁ ଆମେ ଏହି ସ୍ଥାନୁଁ ଯାଉଛୁ ସମସ୍ତେ ।
[ ହାତୀ ଯିବାକୁ ଉଦ୍ୟତ ହେଲା ]

ବାଘ—( ବାଧା ଦେଇ ) ନା ନା, ଅସମ୍ଭବ ତାହା ।
କରିବ ଅବଜ୍ଞା ରାଜାଦେଶ ?
ଦେବ ଏତେ ବଡ଼ ଅପମାନ ସମ୍ରାଟଙ୍କୁ ?

ଭାଲୁଆ—ନ କର ଏ ମନ୍ଦବୁଦ୍ଧି ଆଉ ଗଜରାଜ !
ପରିଣାମ ହେବ ଭୟାବହ,
ଛାରଖାର ହେବ ବନ,
ଏକାବେଳେ ପଶୁସବୁ ମରିବେ ଅକାଳେ
ଦଳବଳ ନେଇ କଲେ ଆମେ ଆକ୍ରମଣ ।

ସିଂହ—ଜାଣି ନାହିଁ ତୁମେ କିବା ମୋର ପରାକ୍ରମ !
ଯେତେ ଦନ୍ତା, ବଳବନ୍ତା ହେଲେ ତୁମେ ହାତୀ
ପାରିବ କି ରକ୍ଷା କରି ପଶୁଗଣେ ମୋର ଆକ୍ରମଣୁ ?
ହେଲେ ବି ମୁଁ ବୃଦ୍ଧ କ୍ରୁଦ୍ଧ ଅତି ତୁମ ଆଚରଣେ ।
କହୁଛି ବୁଝାଇ, ମୋ ପ୍ରସ୍ତାବେ ହୁଅ ରାଜି ।
ହାତୀ—ପାଜି ସିଂହ !
ଜାଣିଛୁ ନାଶିବୁ ଆମ ପଶୁକୁଳେ କରି କଉଶଳ;
ଯେଣୁ ନାହିଁ ବଳ କରିବାକୁ ସମ୍ମୁଖସମର !
ବିଶ୍ୱାସେ ମିଶାଇ ବିଷ···
ସିଂହ—ତେବେ ସମ୍ଭାଳ ଏଥର ! କିଏ କହେ ନାହିଁ ବଳ ?
କର ସର୍ବେ ମିଶି ଆକ୍ରମଣ ।

[ ସିଂହ, ବାଘ ଓ ଭାଲୁଆ ହାତୀ, ଗଧ ପ୍ରଭୃତିଙ୍କୁ ଆକ୍ରମଣ କଲେ । ହାତୀ ଆଗରେ ରହି ସେମାନଙ୍କର ପ୍ରତିରୋଧ କଲା । କ୍ରମେ ଗଧ ମାଙ୍କଡ଼ ଓ ଶେଷରେ ହାତୀ ପଳାଇଲେ । ]

ଭାଲୁଆ—ପଳାଇଲେ ସର୍ବେ,
କର, କର ଆକ୍ରମଣ ସିଂହ !
ସିଂହ - ନାହିଁ ବଳ ସେଥିପାଇଁ ମୋର ।
ଭାଲୁଆ—ତେବେ ବାଘ ?
ବାଘ—ନ ପାରିବି ଏକାକୀ ମୁଁ ହାତୀସଙ୍ଗେ ଲଢ଼ି,
ବରଂ ତୁମେ···
ଭାଲୁଆ —ଯୁଝିବାକୁ ହାତୀ ସଙ୍ଗେ ବଳ କାହିଁ ମୋର ?
ଭାବିଥିଲି ବାଘ-ସିଂହଙ୍କର ସାହାଯ୍ୟରେ
ଉଦର-ବେଦନା-ଦୁଃଖ ନ ଭୋଗିବି କେବେ;
ମାତ୍ର···
କହ, କହ ସିଂହରାଜ କରିବା କି ବୁଦ୍ଧି ?

ସିଂହ—କି ବୁଦ୍ଧି କରିବ ଆଉ ଧୂର୍ତ୍ତ ମନ୍ତ୍ରିବର !
ନ ରହିଲେ କେହି ଯେଣୁ ଆମ ଖାଦ୍ୟପାଇଁ,
ଅବଶ୍ୟ ତୁମକୁ ଆମେ କରିବୁ ଭକ୍ଷଣ ।
[ ସିଂହ ଗର୍ଜନ କରି ବିଲୁଆକୁ ଧରିଲା ]



ବାଘ—ହଁ, ଖାଇବୁ ତୁମକୁ ।
ପ୍ରଥମେ ମନ୍ତ୍ରିଙ୍କ ପାଳି ।

ବିଲୁଆ—ଆଃ···ଉଃ···କି ଦୁଃଖ !
ବଣର ନିରୀହ ଜୀବେ ମରାଇବାପାଇଁ
କଲି ମହା ହୀନ ଷଡ଼୍‌ଯନ୍ତ୍ର—
ଶେଷେ ମଲି ମୁହିଁ !!
ଯେ ପାଞ୍ଚେ ପରର ମନ୍ଦ,
ତାର ମନ୍ଦ ପାଞ୍ଚନ୍ତି ଗୋବିନ୍ଦ ।

[ ସିଂହ, ବାଘ ଭୀଷଣ ଗର୍ଜନ କରି ବିଲୁଆକୁ ମାଡ଼ିବସିଲେ । ବିଲୁଆ ବିକଳରେ ରଡ଼ି ଛାଡ଼ିଲା । ଏତିକି-ବେଳକୁ ପରଦା ନଇଁଆସିଲା । ]

